ଉତ୍କଳ

# ବ୍ରାହ୍ମଣ-ସମିତି ।

ପୁରୀ ।

( ୪ ର୍ଥ ବାର୍ଷିକ ଅଧିବେଶନ ଉପଲକ୍ଷରେ ଲିଖିତ )

" ବାଜୁ ମିଳନର ଶୁଭ ଶଙ୍ଖ ଧ୍ୱନି
ଜାଗୁ ଆନନ୍ଦରେ ଉତ୍କଳ ଧରଣୀ ।
ପାହିଲାଣି ଏବେ ନିରାଶା ଶର୍ବରୀ
ଭାଳୁଛନ୍ତି ମାତା କେତେ ଆଶା କରି ।
ଜାଗ ହେ ସରବେ ଉତ୍କଳ ସନ୍ତାନେ
ଏକତାର ମନ୍ତ୍ର ଜପି ପ୍ରାଣେ ପ୍ରାଣେ ।"

ଶ୍ରୀ କାଶୀନାଥ ମହାପାତ୍ର ଶର୍ମ୍ମା
ସମ୍ପାଦକ

Printed by G. N. Mishra at the
Jagannath Press
PURI.
1904.

# ଉତ୍କଳ
## ବ୍ରାହ୍ମଣ—ସମିତି ।

ଯାହାଙ୍କର ଅସୀମ ମହିମା ଏବଂ ଅପାର କରୁଣା ବଳରେ ଏହି ସୁବିଶାଳ ବ୍ରହ୍ମାଣ୍ଡ ନିତ୍ୟ ନିୟମିତ ମାର୍ଗରେ ଗତି କରୁଅଛି, ଯାହାଙ୍କ ଇଚ୍ଛାରେ ସୁମହାନ୍ ପର୍ବତ, ରେଣୁ ଏବଂ ରେଣୁକଣା ମଧ୍ୟ ପର୍ବତ ହେଉଅଛି; ଗୋଷ୍ପଦ ସମୁଦ୍ର ଏବଂ ସମୁଦ୍ର ମଧ୍ୟ ଗୋଷ୍ପଦ ହେଉଅଛି, ସେହି ସର୍ବ ଧାତା ପରମ ପିତା ପରମେଶ୍ୱରଙ୍କ ଅପାର ମହିମା ଏବଂ କରୁଣାକୁ ଅନୁଧ୍ୟାନ କରି ଅଦ୍ୟ ଶୁଭକ୍ଷଣରେ ଏହି ଶିଶୁ ପ୍ରାଣ "ଉତ୍କଳ ବ୍ରାହ୍ମଣ ସମିତିର" ଷାଣ୍ମାସିକ ବିବରଣୀ ପ୍ରକାଶ କରିବାକୁ ଅଗ୍ରସର ହୋଇ ସହୃଦୟ ସଦାଶୟ କୃତବିଦ୍ୟ ଭଦ୍ର ମହୋଦୟଗଣଙ୍କ ନିକଟରେ ବିନୀତ ଭାବରେ ଉପସ୍ଥିତ ହୋଇଅଛି । ଆଶାକରେ କ୍ଷମାଶୀଳ ଭଦ୍ରମଣ୍ଡଳୀ ଏଥିରେ ପରିଦୃଷ୍ଟ ଦୋଷାଂଶ ପରିହାର କରି ଉଦାର ହୃଦୟରେ ଏହାର ସାରାଂଶ ଗ୍ରହଣ କରି ବାଧିତ କରିବା ହେବେ ।

ବିଶ୍ୱପତିଙ୍କର ଦୁର୍ଲଂଘ୍ୟ ବିଧିର ଅଧୀନ ହୋଇ କାଳସ୍ରୋତ ଚାଲି ଯାଉଅଛି; ତାହା ସଙ୍ଗେ ସଙ୍ଗେ ୧୯୦୩ ମସିହା କାଳର ଅନନ୍ତ ଗର୍ଭରେ ଲୀନ ହୋଇ ଯାଇଅଛି । ଏହି ଅତୀତ ବର୍ଷରେ ଉତ୍କଳରେ କେତେଟି ଶୁଭାଶୁଭ ଘଟନାର ସଂଘଟନ ହୋଇଅଛି ତାହା ଉଲ୍ଲେଖ କରାଯାଇ ନପାରେ; କିମ୍ବା ସେ ସମସ୍ତ ଉଲ୍ଲେଖ କରିବାର ଏ ସ୍ଥାନ ଓ ସମୟ ବର୍ତ୍ତମାନ ନୁହେଁ ।

ଉତ୍ଥାନ ଓ ପତନ ଜଗତର ନିୟମ । ଏହି ଉତ୍କଳ ଅବନୀ ଦିନେ ଉନ୍ନତିର ଚରମ ସୀମାରେ ଉପନୀତ ହୋଇ ଥିଲା । ଏହାର ମହିମା ଦିନେ ବିଶ୍ୱବାସୀ ଅନୁଭବ କରିଥିଲେ । ସେ ସମୟର ଉଦାହରଣ ଉତ୍କଳ ବକ୍ଷରେ ସାହିତ୍ୟ ଓ ଶିଳ୍ପ ରୂପରେ ବର୍ତ୍ତମାନ ସୁଦ୍ଧା ଦେଦୀପ୍ୟମାନ ରହିଅଛି । ମାତ୍ର ସେହି ସ୍ମୃତି-ଚିହ୍ନ-ଗୁଡ଼ିକ ଦୃଷ୍ଟି ପଥରେ ପତିତ

ହେଲେ ଏବଂ ଆମ୍ଭମାନଙ୍କ ସଦୃଶ ଉତ୍କଳର ଅଧମ ସନ୍ତାନମାନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କଲେ କୌଣସି ବୁଦ୍ଧିମାନ୍ ଚିନ୍ତାଶୀଳ ବ୍ୟକ୍ତି କଦାପି ବିଶ୍ୱାସ କରିବ ନାହିଁ ଯେ ଆମ୍ଭେମାନେ ସେହି ଗୌରବାନ୍ୱିତା ଉତ୍କଳ ମାତାର ସୁସନ୍ତାନ ଅଟୁଁ ।

ଯାହାହେଉ ଏଠାରେ ସେହି ଅତୀତ-ଗୌରବ ଆଲୋଚନାର ପ୍ରୟୋଜନ ନାହିଁ, କିମ୍ବା ଅଦ୍ୟ ତାହା ଗାନର ଏ ସମୟ ନୁହେଁ । ବର୍ତ୍ତମାନ ଉତ୍କଳ ଜନନୀର ଶୋଚନୀୟ ଅବସ୍ଥା ସ୍ମରଣ କରିଯାଉ । ଆଧୁନିକ ଉତ୍କଳ ମାତା ଧନ, ମାନ ଏବଂ ବିଦ୍ୟା ପ୍ରଭୃତି କୌଣସି ଅଂଶରେ ପ୍ରତିବେଶିନୀ ଭଗିନୀ ମାନଙ୍କର ସମକକ୍ଷା ନୁହେଁ । ତେଣୁ ଅନ୍ୟାନ୍ୟ ଭ୍ରାତାମାନଙ୍କ ନିକଟରେ ଆମ୍ଭେ ଉତ୍କଳ ଭ୍ରାତାମାନେ ଅନାଦୃତ, ହେୟ, ଅବଜ୍ଞାତ ଏବଂ ସମାନ ଆସନର ଅଯୋଗ୍ୟ ହୋଇଅଛୁଁ । ବିଦ୍ୟା ଓ ଧନରେ ହୀନ ହେବାରୁ ସାହିତ୍ୟ, ଶିଳ୍ପ, ବାଣିଜ୍ୟ, କୃଷି ଓ ସମାଜ ପ୍ରଭୃତି ସମସ୍ତ ଉନ୍ନତିକର ବିଭାଗମାନଙ୍କରେ ଆମ୍ଭମାନଙ୍କ ଦୁର୍ଗତି ଉପସ୍ଥିତ ହୋଇଅଛି । ପୂର୍ବୋକ୍ତ ବିଷୟମାନଙ୍କରେ ଉନ୍ନତ କରି ନପାରିଲେ ଆମ୍ଭେମାନେ ପ୍ରକୃତ ମନୁଷ୍ୟ ଏବଂ ଗୋଟିଏ ଜାତି ବୋଲି ସାଧାରଣରେ ପରିଚିତ ହୋଇ ପାରିବା ନାହିଁ । ସେଥି ନିମନ୍ତେ ସର୍ବ ପ୍ରଥମେ ବିଦ୍ୟା ଶିକ୍ଷାକରିବା ଆମ୍ଭମାନଙ୍କର ଏକାନ୍ତ ପ୍ରୟୋଜନ । ବ୍ରିଟିଶ ଶକ୍ତି ଉତ୍କଳ ବକ୍ଷରେ ଶତବର୍ଷ ହେଲା ନିଜତ୍ୱ କରି ଆସୁଅଛି । ଏବଂ ସେହି ହିତକର ଶାସନର କାଳ ପରିମାଣ ବର୍ତ୍ତିତ ବର୍ଷରେ ଶତସଂଖ୍ୟାରେ ପୂର୍ଣ୍ଣ ହେଉଥିବାରୁ ୧୯୦୩ ମସିହା ଆମ୍ଭମାନଙ୍କ ମନରେ ଜାଗରୁକ ରହିଅଛି ଓ ରହିବ । ପ୍ରବଳ ପ୍ରତାପ ଇଂରେଜ ଗଭର୍ଣ୍ଣମେଣ୍ଟ ଆମ୍ଭମାନଙ୍କ ପିତୃ ସ୍ଥାନୀୟ ଥାଇ ସନ୍ତାନମାନଙ୍କ ସୁଖ ସୁବିଧା, ବିଦ୍ୟା ଓ ସ୍ୱାସ୍ଥ୍ୟ ପ୍ରଭୃତି ନାନା ବିଭାଗରେ ସୁଦୃଷ୍ଟି ନିକ୍ଷେପ କରୁଅଛନ୍ତି । ସେଥିନିମନ୍ତେ ଆମ୍ଭେମାନେ ତାଙ୍କଠାରେ ଚିରକୃତଜ୍ଞ ରହି ଶ୍ରଦ୍ଧା ଭକ୍ତି ସହିତ ଆନ୍ତରିକ ଶତ ୨ ଧନ୍ୟବାଦ ପ୍ରଦାନ କରୁଅଛୁଁ । ମାତ୍ର ହିଁତା ସନ୍ତାନ-

ାବଙ୍କ ସଂରକ୍ଷଣରେ ସର୍ବଦା ଯତ୍ନବାନ୍ ଥିଲେ ସୁଦ୍ଧା ସନ୍ତାନ ମାନେ ଆତ୍ମନିର୍ଭରଶୀଳ ନ ହେଲେ କଦାପି ପ୍ରକୃତ ସୁଖ ଓ ଉନ୍ନତି ଲାଭ କରି ପାରନ୍ତି ନାହିଁ । ଅତ୍ର ମଧ୍ୟ ବହୁପୁତ୍ରିକ ପିତାଠାରୁ ପୁତ୍ରମାନଙ୍କର ସର୍ବାଙ୍ଗୀନ ଉନ୍ନତି ଆଶା କରିବା ସର୍ବଦା ଯଥାର୍ଥ ନୁହେଁ । ଅତଏବ ହେ ଉତ୍କଳୀୟ ଭ୍ରାତୃବୃନ୍ଦ ! ଆତ୍ମନିର୍ଭରଶୀଳ ହେବାକୁ ସର୍ବଦା ଚେଷ୍ଟା କର । ଅବଶ୍ୟ ଉନ୍ନତି ତୁମ୍ଭର ପଶ୍ଚାଦ୍ଗାମିନୀ ହେବ ।

ଉତ୍କଳମାତା କୋଟି୨ ସନ୍ତାନ ପ୍ରସବ କରିଅଛନ୍ତି ସତ୍ୟ କିନ୍ତୁ ଗୋଟିଏ ମାତ୍ର ସୁସନ୍ତାନ ନ ଥିବାରୁ କବି ରୋଦନ କରିଅଛନ୍ତି ।

“ କୋଟିଏ ସନ୍ତାନ ମାଗୋ ଧରିଅଛୁ କୋଳେ
ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲୁ ତୋଳେ ;
ସମସ୍ତେ ମୋହର ପର ମୋହେ ମୁହ୍ୟମତ
କ୍ଷୁଦ୍ର ସ୍ୱାର୍ଥ କାପୁରୁଷ ନିସ୍ତେଜ ମୂରଖ ॥

ହେ ଭ୍ରାତୃଗଣ ! କବିର ଏ ବାଣୀ ସତ୍ୟ ନୁହେଁ କି ? ବାସ୍ତବିକ ଉତ୍କଳରେ ଏପରି ଶକ୍ତିଶାଳୀ ଭ୍ରାତା କେହି ନାହିଁ ଯେ କି ଅନ୍ୟାନ୍ୟ ଭାଇମାନଙ୍କ ସକାଶେ ମନ ପ୍ରାଣ ଧନ ଢାଳିଦେଇ ଭ୍ରାତାମାନଙ୍କର ଦୁର୍ଗତି ମୋଚନ କରିବ । ସମସ୍ତେ ଶକ୍ତିହୀନ ଧନହୀନ ଓ ହୃଦୟହୀନ ସୁତରାଂ ଆମ୍ଭେମାନେ ମାତାର ଅଯୋଗ୍ୟ ସନ୍ତାନ ଏହା ନିଃସନ୍ଦେହରେ ବୋଲାଯାଇ ପାରେ ।

ଉତ୍କଳ ମାତାର ସନ୍ତାନମାନେ ପ୍ରଧାନତଃ ହିନ୍ଦୁ, ମୁସଲ୍‌ମାନ ଓ ଖ୍ରୀଷ୍ଟାନ୍ ନାମରେ ଅଭିହିତ । ଖ୍ରୀଷ୍ଟୀୟାନ ଭାଇମାନେ ଜଗତହିତୈଷୀ ମିଶନରିମାନଙ୍କର କଲ୍ୟାଣରୁ ବିଶେଷ ଆଲୋକ ପ୍ରାପ୍ତ ହୋଇଅଛନ୍ତି ; ମାତ୍ର ହିନ୍ଦୁ ଓ ମୁସଲ୍‌ମାନ ଭାଇମାନଙ୍କର ସେ ସୁବିଧା ବିଶେଷ ପରିମାଣରେ ନାହିଁ । ଏହିହେତୁରୁ ସୁଯୋଗ୍ୟ ମୁସଲ୍‌ମାନ ଭାଇମାନେ କଟକ ଓ ବାଲେଶ୍ୱର ନଗରରେ ସ୍ୱ ୨ ଜାତିର ଉନ୍ନତି କଳ୍ପେ ଗୋଟିଏ ୨ ସମାଜ ବହୁ ଦିନରୁ ସ୍ଥାପନ କରି କ୍ରମଶଃ ଉନ୍ନତି ପଥରେ ଅଗ୍ରସର ହେଉ

ଅଛନ୍ତି । ଏବଂ ସମୁନ୍ନତ ବଙ୍ଗୀୟ ଭ୍ରାତାମାନେ କାୟସ୍ଥ ସମିତି କରି ଉତ୍ତମ ଉଦାହରଣ ଅନ୍ୟାନ୍ୟ ଭାଇମାନଙ୍କ ସମକ୍ଷରେ ରଖିଅଛନ୍ତି । ପୁଣି ଏ ପ୍ରଦେଶର କରଣ ସମାଜ, ଶିକ୍ଷା ଓ ସମାଜ ସଂସ୍କାର ବିଷୟରେ ବ୍ରତୀ ହୋଇ କେତେକାଳ ନୀରବରେ ଅତିବାହିତ କରି ବର୍ତ୍ତମାନ ଜାଗ୍ରତ ଭାବରେ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଅଛି । ଉପରୋକ୍ତ ଉନ୍ନତ ଭ୍ରାତାମାନଙ୍କର ସଦ୍ଦୃଷ୍ଟାନ୍ତ ଦର୍ଶନ କରି ଏହି ବ୍ରାହ୍ମଣପ୍ରଧାନ ପୁରୀ-ନଗରୀରେ ଉତ୍କଳ ବ୍ରାହ୍ମଣ ସମାଜର ଉନ୍ନତିକଳ୍ପେ ଗୋଟିଏ ସମିତି ବିଗତ ସନ ୧୮୯୯ ମସିହା ଡିସେମ୍ବର ମାସ ୨୮ ତାରିଖରେ ସ୍ଥାପିତ ହୋଇଅଛି । ଏହି ସମିତି ଗତବର୍ଷ ୪ର୍ଥ ବର୍ଷକୁ ଅତିକ୍ରମ କରି ବର୍ତ୍ତ-ମାନ ୫ମ ବର୍ଷରେ ପଦାର୍ପଣ କରିଅଛି । ଏହାର ସବିଶେଷ ବିବରଣ ଯଥା ସ୍ଥାନରେ ପ୍ରଦର୍ଶିତ ହେବ । ବର୍ତ୍ତମାନ ଏଠାରେ ଏହି ପ୍ରସଙ୍ଗରେ ଆଉ ଗୋଟିଏ ବିଷୟର ଉଲ୍ଲେଖ ନ କରି ମୁଁ ରହି ପାରୁ ନାହିଁ । ଉତ୍କଳର ବହୁ କୃତବିଦ୍ୟ ଚିନ୍ତାଶୀଳ ସୁସନ୍ତାନ ନିଜ ନିଜ ସମ୍ପ୍ରଦାୟର ଉନ୍ନତି ଇଚ୍ଛା କରି ଯେଉଁ ସଭାସମିତିମାନ ସ୍ଥାପନ କରି ଅଛନ୍ତି ସେ ସମ-ସ୍ତଙ୍କୁ ଦେଶର ଅନ୍ୟ କେତେକ କୃତବିଦ୍ୟ ମାର୍ଜ୍ଜିତରୁଚି ଓ ଉଦାର-ହୃଦୟ ବ୍ୟକ୍ତି ମନେ ମନେ ଘୃଣା କରି ଏହିପରି ମନ୍ତବ୍ୟ ପ୍ରକାଶ କରିଥାନ୍ତି; " ଏ ସବୁ ସାମ୍ପ୍ରଦାୟିକ ସଭାସମିତି ଦେଶର ଘୋର ଅନିଷ୍ଟ ଉତ୍ପାଦନ କରୁଅଛି; କାରଣ ଏହାଦ୍ୱାରା ଦେଶରେ ସଙ୍କୀର୍ଣ୍ଣତା ବୃଦ୍ଧି ପାଇ ଏକ-ତାର ଅପକର୍ଷ ସାଧିତ ହେଉଅଛି ଏବଂ ଏହା ପ୍ରକୃତ ଉନ୍ନତିର ଉପାୟ ନ ହୋଇ ବରଂ ଅବନତିର ଗୋଟିଏ ଗୋଟିଏ ପ୍ରଶସ୍ତ ମାର୍ଗ ଉନ୍ମୁକ୍ତ କରି ଦେଉଅଛି; ସୁତରାଂ ଆଜି ବିଂଶ ଶତାବ୍ଦୀରୂପ ଉନ୍ନତିକରଯୁଗରେ ବ୍ରାହ୍ମଣ, କରଣ, କାୟସ୍ଥ ଓ ମୁସଲ୍‌ମାନ ନାମରେ ନାମିତ ହୋଇ ଜାତି ବା ସମ୍ପ୍ରଦାୟ ଭେଦରେ ଏପରି ଭିନ୍ନ ଭିନ୍ନ ସଭା ସମିତି ସ୍ଥାପିତ ହେବା ଆଦୌ ବାଞ୍ଛନୀୟ ନୁହେ" । ହେ ସମବେତ ଭ୍ରାତୃମଣ୍ଡଳ ! ଏହା ଯଦି ସତ୍ୟ ଓ ଯଥାର୍ଥ ହୁଏ ତେବେ ଏପରି ଭାବରେ ମିଳିବା ଅଥବା ଏହିପରି

ସଭା ସମିତିଙ୍କର ଦେଶର କଲ୍ୟାଣ ସାଧନରେ ଚେଷ୍ଟା କରିବାତ ବୃଥା ମାତ୍ର ହେଉଅଛି ? ମୋର କ୍ଷୁଦ୍ର ବିବେଚନାରେ ଉତ୍କଳର ବର୍ତ୍ତମାନ ଯେପରି ଅବସ୍ଥା ଘଟିଅଛି ସେଥିରେ ପୂର୍ବୋକ୍ତ ନୀତି ସମୀଚୀନ ହୋଇ ନ ପାରେ । ଉତ୍କଳର କଥା ପଛକୁ ଥାଉ, ଭାରତର ଅନ୍ୟାନ୍ୟ ଉନ୍ନତ ଅଂଶମାନଙ୍କରେ ଏହିପରି ସ୍ୱ ସ୍ୱ ସମାଜର ଉନ୍ନତି ବିଧାନ ନିମିତ୍ତ ବିବିଧ ସମିତିର ସୃଷ୍ଟି ହୋଇଅଛି ।

ସମୁନ୍ନତ ବଙ୍ଗରେ କାୟସ୍ଥ ସମାଜ, ପଶ୍ଚିମ ପ୍ରଦେଶରେ ଲାଲାମାନଙ୍କ ସମାଜ, ଦକ୍ଷିଣରେ ବ୍ରାହ୍ମଣସମାଜ ଓ ବମ୍ବେ, ସହରରେ ଜୈନ ସମାଜ ତାହାର ଜ୍ୱଳନ୍ତ ଉଦାହରଣ । ଅନ୍ତୁର ଦେଖାଯାଉ ସମସ୍ତ ଭାରତରେ ମୁସଲମାନ ସମିତି ସ୍ଥାପିତ ହୋଇ ୧୭ଶ ବର୍ଷ ହେଲା ଭାରତବର୍ଷରେ ନାନା ସ୍ଥାନରେ ବୈଠକ କରି ସ୍ୱ ଜାତିର ଉନ୍ନତିସକାଶେ ବିବିଧ ପ୍ରସ୍ତାବମାନ ଅଗତ କରୁଅଛି ଏବଂ ଭାରତବାସୀ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ ଓ ଜୈନ ମାନଙ୍କୁ ମହୋଜ୍ଜ୍ୱଳ ଉଦାହରଣ ଦେଖାଇ ଆସୁଅଛି, ଏହା କି ଭାରତର କଲ୍ୟାଣ କର ନୁହେ ? ଏହି କ୍ଷୁଦ୍ର ସମାଜମାନ ସ୍ୱ ସ୍ୱ ଉନ୍ନତି ପଥରେ ଅଗ୍ରସର ହେଲେ ସମଷ୍ଟିରେ ଏମାନଙ୍କ ଉନ୍ନତି କି ଭାରତୋନ୍ନତିରେ ପରିଣତ ନ ହେବ ? ଏହା କୁହାଯାଇ ନ ପାରେ । ବରଂ ଏହା ସ୍ୱୀକାର କରିବାକୁ ହେବ ଯେ ଏହି କ୍ଷୁଦ୍ର କ୍ଷୁଦ୍ର ଶକ୍ତିର ସମ୍ମିଳନରେ ଦିନେ ମହୀୟସୀ ଶକ୍ତିର ଉତ୍ପାଦନା ହେବ । ସେତେବେଳେ ସମଗ୍ର ଭାରତ ପ୍ରକୃତ କଲ୍ୟାଣ ମୁଖ ଦେଖି ପାରିବ । ଏହାର ପରିଚୟ ଅନେକ ମିଳୁଅଛି । ବିଗତ ଉତ୍କଳ ସମ୍ମିଳନୀରେ ତାହାର ଯଥାର୍ଥ ଉଦାହରଣ ଦେଖାଯାଇ ଅଛି । ଏହି ସମିତିମାନ ସ୍ଥାପିତ ଥିବାରୁ ସାଧାରଣରେ ତାହାର ଅବଶ୍ୟକତା ପ୍ରଶ୍ନର ପକ୍ଷରେ ବହୁ ସୁବିଧା ହୋଇଅଛି । ସମସ୍ତେ ସେଦିନ ମିଳିତ ହୋଇ ଏକ ବାକ୍ୟରେ ଏକ ପ୍ରାଣରେ ଉତ୍କଳର ହିତ ଚିନ୍ତା କରିବାଲାଗି ବ୍ୟସ୍ତ ରହିଥିବାର ଦେଖାଯାଇଅଛି । ଯଦି କେହି ଏହାର ତତ୍ତ୍ୱ ନେଇଥାନ୍ତି ତେବେ

ସେ ଅବଶ୍ୟ ଦେଖି ପାରିଥିବେ ଯେ ଏହି ସାମ୍ପ୍ରଦାୟିକ ସଭା ସମିତି ସେହି ଜାତୀୟ ସମ୍ମିଳନୀର ଏକ ଏକ ଅଙ୍ଗ । ଏବଂ ଏହି କ୍ଷୁଦ୍ର ସମିତି ମାନଙ୍କ ସଭ୍ୟମାନେ ତାହାର ସେବକ । ଅତଏବ ହେ ବନ୍ଧୁଗଣ ! କଦାପି ହତାଶ ବା ଭଗ୍ନୋଦ୍ୟମ ନ ହୋଇ ସର୍ବଶକ୍ତିମାନ୍ ଜଗଦୀଶ୍ୱରଙ୍କୁ ସ୍ମରଣ କରି ଦୃଢ଼ ଭାବରେ କର୍ମ କ୍ଷେତ୍ରରେ ପ୍ରବେଶ କର । ସମିତିର ମହତ୍ ଉଦ୍ଦେଶ୍ୟ ଯେପରି ସାଧିତ ହୁଏ ସେଥିପ୍ରତି ଆପଣା ଆପଣାର ଶକ୍ତି ସାମର୍ଥ୍ୟ ନିଯୋଗ କର, ଦେଖିବ ଏହାର ଫଳ ସାଂପ୍ରଦାୟିକ ସ୍ୱାର୍ଥପରତାକୁ ତ୍ୟାଗ କରି ସମସ୍ତ ମାନବସମାଜର ଉନ୍ନତିରେ ପରିଣତ ହୋଇ ଉତ୍କଳର ତଥା ଭାରତର ଏବଂ ସମଗ୍ର ଭୂମଣ୍ଡଳର ଉପକାର ସାଧନ କରିବ ।

ହେ ସହୃଦୟ ଭାଇମାନେ ! ଆଜି କି ଆନନ୍ଦର ଦିନ । ଆଜି ସମସ୍ତ ଉତ୍କଳର ସମ୍ମିଳନ ହେଉଅଛି । ଗଞ୍ଜାମ ସମେତ ସମସ୍ତ ପ୍ରାକୃତିକ ଉତ୍କଳକୁ ନବ ଜୀବନ ପ୍ରଦାନ କରିଅଛି । କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ସଦମ୍ଭରେ ଆହ୍ୱାନ କରୁଅଛି । ଏପରି ସମୟରେ ନୀରବ ରହିବା କଦାପି ଆମ୍ଭମାନଙ୍କର ଶ୍ରେୟସ୍କର ନୁହେ । ଆସ ସମସ୍ତେ ମିଳିତ ହୋଇ ଉତ୍କଳର ଉପଯୁକ୍ତ ପୁତ୍ର ଶ୍ରୀ ନୀଳମଣି ବିଦ୍ୟାରତ୍ନ ଓ ଉତ୍କଳର ବର ପୁତ୍ର ସ୍ୱନାମ ଧନ୍ୟ ପୁରୁଷ ଶ୍ରୀ ମଧୁସୂଦନଙ୍କୁ ଧନ୍ୟବାଦ ଦେବା, ଏବଂ ସେମାନଙ୍କ ବହୁ କଳ୍ପନା ପ୍ରସୂତ ସମସ୍ତ ଉତ୍କଳବାସିଙ୍କ ଅନୁମୋଦିତ ଶିକ୍ଷା, ସମାଜ, ଶିଳ୍ପ, ବାଣିଜ୍ୟ, ଓ କୃଷି ପ୍ରଭୃତିରେ ଯେପରି ଉନ୍ନତି ସାଧିତ ହୁଏ ସେଥିରେ ଚେଷ୍ଟା କରିବା; ତାହାହେଲେ ଆମ୍ଭମାନଙ୍କର ଉନ୍ନତିଦ୍ୱାର ଅଚିରେ ଉଦ୍ଘାଟିତ ହେବ ।

ହେ ସଦାଶୟ ବନ୍ଧୁଗଣ ! କଥା ପ୍ରସଙ୍ଗରେ ମୂଳ ବିଷୟର ଅବତାରଣା ମାତ୍ର କରି ବହୁଦୂର ଆସିଗଲି । ବର୍ତ୍ତମାନ ସେହି ବ୍ରାହ୍ମଣ ସମିତିର ବିଷୟ କିଞ୍ଚିତ୍ ଆଲୋଚନା କରିଯାଉ । ଆମ୍ଭମାନଙ୍କର ଏହି ସମିତି ଉତ୍କଳରେ ଅନୁନ୍ନତ ଦରିଦ୍ର ବ୍ରାହ୍ମଣ ଜାତିର ଶିକ୍ଷା, ସଭ୍ୟତା ଓ ସାମାଜ-

କତାର ଶ୍ରୀବୃଦ୍ଧି ସାଧନ ଉଦେଶ୍ୟରେ ଗତ୪ବର୍ଷ ହେଲା ସ୍ଥାପିତ ହୋଇ ବର୍ତ୍ତମାନ ପଞ୍ଚମ ବର୍ଷରେ ଉପସ୍ଥିତ ହୋଇଅଛି । ଏହାର ଶୈଶବୀୟ ଅବସ୍ଥା ଏ ପର୍ଯ୍ୟନ୍ତ ଦୂର ହୋଇ ନାହିଁ । ସୁତରାଂ ଏହାର ଉନ୍ନତି ସମ୍ବନ୍ଧରେ ବିଶେଷ କିଛି ଲେଖି ଆପଣମାନଙ୍କର ତୃପ୍ତି ସମ୍ପାଦନ କରି ନ ପାରେ । କେବଳ କର୍ତ୍ତବ୍ୟ ବୋଧରେ ଏହାର କାର୍ଯ୍ୟ-ପ୍ରଣାଳୀର ସଂକ୍ଷିପ୍ତ ବିବରଣ ଏଠାରେ ପ୍ରକାଶ କରୁଅଛି । ଏବଂ ଏହା ମଧ୍ୟ ଏଠାରେ ନୂତନ ନୁହେଁ । ପ୍ରତି ବର୍ଷ ଶେଷରେ ଏହାର କାର୍ଯ୍ୟ ବିବରଣୀ ଲିପିବଦ୍ଧ ହୋଇ ବାର୍ଷିକ ଅଧିବେଶନରେ ପଠିତ ହୋଇଥାଏ, ଏବଂ ସାଧାରଣଙ୍କ ଅବଗତି ନିମିତ୍ତ ତାହା ଉତ୍କଳୀୟ ସମ୍ବାଦପତ୍ର ମାନଙ୍କରେ ପ୍ରକାଶିତ ଓ ଆଲୋଚିତ ହୋଇ ଥାଏ । ସୁତରାଂ ଏ ସମିତି ଉତ୍କଳର ସାଧାରଣ ପାଠକବର୍ଗଙ୍କର ଅବିଦିତ ହୋଇ ନାହିଁ । ମାତ୍ର ଏହାର କାର୍ଯ୍ୟ କ୍ଷେତ୍ର ଏ ପର୍ଯ୍ୟନ୍ତ ପୁରୀ ଜିଲ୍ଲା ମଧ୍ୟରେ ଆବଦ୍ଧ ରହିଥିବାରୁ ଉତ୍କଳର ଅନ୍ୟାନ୍ୟ ଅଂଶରେ ସମିତି ନିଜର ପରିଚୟ ବିଶେଷ ଭାବରେ ଦେଇ ପାରିନାହିଁ । ଏହା ଅବଶ୍ୟ ତାହାର ବାଲ୍ୟାବସ୍ଥା ହେତୁ ବୋଲାଯିବ । ଯାହାହେଉ ଏହି ସମିତି ଯେପରି ଭାବରେ ପରି-ଚାଳିତ ତାହା ସ୍ଥାନାନ୍ତରେ ପ୍ରକାଶିତ ନିୟମାବଳୀରୁ ସମସ୍ତେ ବୁଝି ପାରିବେ । ସେହି ନିୟମ ଅନୁସାରେ ଏହାର ଯେ ଗୋଟିଏ କାର୍ଯ୍ୟ ନିର୍ବାହକ ସମିତି ଅଛି, ତହିଁରେ ମନୋନୀତ ସଭ୍ୟବୃନ୍ଦଙ୍କ ପରାମର୍ଶ ଏବଂ ପ୍ରସ୍ତାବ ଅନୁସାରେ ଏ ସମିତିର ସମସ୍ତ କାର୍ଯ୍ୟ ନିର୍ବାହିତ ହୋଇଆସୁଅଛି । ଏହି ସମିତି ପ୍ରତିମାସରେ ଦୁଇ ଥର ଅଧିବେଶିତ ହୁଏ । ଏବଂ ସେହି ଅଧିବେଶନ ପାକ୍ଷିକ ଶନିବାର ସନ୍ଧ୍ୟା ୭ଘଣ୍ଟାଠାରୁ ଆରମ୍ଭ ହୋଇ ଥାଏ । ସମିତିର କର୍ମ୍ମକର୍ତ୍ତା ଓ ନିୟମିତ ସଭ୍ୟଗଣଙ୍କ ବ୍ୟତୀତ ଅନ୍ୟାନ୍ୟମାନେ ମଧ୍ୟ ଏଥିରେ ଉପସ୍ଥିତ ହୋଇଥାନ୍ତି । ଏହି ଅଧିବେଶନ ମାନଙ୍କରେ ସଂସ୍ଥିବ ବ୍ରାହ୍ମଣ ସନ୍ତାନମାନଙ୍କର ଶିକ୍ଷା, ସଭ୍ୟତା ଏବଂ ସାମାଜିକତାର ସମ୍ବୃଦ୍ଧି ବିଷୟରେ ନାନାହିତକର ଆଲୋଚନାମାନ କରାଯାଇ-

ଥାଏ । କୌଣସି କୌଣସି ଗୁରୁତର କାରଣ ଉପସ୍ଥିତ ହେଲେ ସମିତିର ସ୍ଥାୟୀ ସଭାପତି କିମ୍ବା ସମ୍ପାଦକଙ୍କର ଆହ୍ୱାନମତେ ଏହାର ମଧ୍ୟ ବିଶେଷ୨ ଅଧିବେଶନ ହୋଇଥାଏ । ଗତ ୪ବର୍ଷ ମଧ୍ୟରେ ବିଶେଷ ଅଧିବେଶନ ସହିତ ଯେତେଗୋଟି ଅଧିବେଶନ ହୋଇଯାଇଅଛି ନିମ୍ନରେ ତାହା ପ୍ରଦର୍ଶିତ ହେଲା ।

୧ମ ବର୍ଷ (୧୯୦୦ ମସିହା)ରେ ୨୦ ଗୋଟି
୨ୟ ବର୍ଷ (୧୯୦୧ ,, ) ,, ୧୭ ,,
୩ୟ ବର୍ଷ (୧୯୦୨ ,, ) ,, ୨୦ ,,
୪ର୍ଥ ବର୍ଷ (୧୯୦୩ ,, ) ,, ୧୨ ,, ଅଧିବେଶନ ହୋଇଥିଲା

ବିଶେଷ ଅଧିବେଶନ ସହିତ ପ୍ରତିବର୍ଷର ଅଧିବେଶନ ସଂଖ୍ୟା ଆଶାନୁରୂପ ହୋଇପାରି ନାହିଁ । ଏହା ଅବଶ୍ୟ ପରିତାପର ବିଷୟ ହେଲେହେଁ ସ୍ଥାନୀୟ ଯାତାୟାତ ଓ ଅନ୍ୟାନ୍ୟ କେତେକ ଅସୁବିଧା ବଶତଃ ସେପରି ଘଟିବା ଏ ସ୍ଥାନପକ୍ଷରେ ସ୍ୱାଭାବିକ ।

ସମିତିର ଉଦ୍ଦେଶ୍ୟ ସାଧନ ନିମନ୍ତେ ବ୍ରାହ୍ମଣ ଓ ବ୍ରାହ୍ମଣେତର ଜାତିମାନଙ୍କଠାରୁ ସାହାଯ୍ୟ ଗୃହୀତ ହୁଏ । ସଂଗୃହୀତ ଅର୍ଥ ସଭାପତିଙ୍କ ନାମରେ ସେଭିଂସ୍‌ବ୍ୟାଙ୍କରେ ରକ୍ଷିତ ଅଛି । ଏହି ସମିତିର ସଭ୍ୟ ସଂଖ୍ୟା ବର୍ତ୍ତମାନ ୧୫୦ ଶତରୁ ଅଧିକ । ଦୁଃଖର ବିଷୟ ଯେ ଅନେକ ସଭ୍ୟ ନିୟମାନୁସାରେ ଶୁଳ୍କ ନଦେବାରୁ ସେମାନଙ୍କ ନାମ କର୍ତ୍ତିତ ହୋଇଅଛି ।

ଗତ ୪ ବର୍ଷ ମଧ୍ୟରେ ଏହି ସମିତି ୧୫ ଗୋଟି ଦରିଦ୍ର ବ୍ରାହ୍ମଣବାଳକଙ୍କୁ ବିଦ୍ୟାଳୟର ବେତନ ଏବଂ ପାଠ୍ୟପୁସ୍ତକାଦିରେ ସାହାଯ୍ୟଦାନ କରିଅଛି । ସମିତିର ଆୟ ପରିମାଣ ଦୃଷ୍ଟିରେ ବର୍ଷ ମଧ୍ୟରେ ଥରେ ଏହି ସାହାଯ୍ୟର ବନ୍ଦୋବସ୍ତ ହୁଏ ।

ସମିତିର ମୁଖ୍ୟ ଉଦ୍ଦେଶ୍ୟ ସାଧିତ ହେବା ଅଭିପ୍ରାୟରେ ସ୍ଥାନୀୟ କେତେକ ସଭ୍ୟ ସମୟେ୨ ନିକଟବର୍ତ୍ତୀ ବ୍ରାହ୍ମଣଶାସନମାନଙ୍କୁ ଯାଇ

ସାମାଜିକ ବୈଦିକ ସଂସ୍କାର ଓ ପରିବର୍ତ୍ତନ ବିଷୟରେ ଉପଦେଶମାନ ପ୍ରଦାନ କରି ଥାନ୍ତି । ଏବଂ ବ୍ରାହ୍ମଣ ସନ୍ତାନମାନଙ୍କୁ ବିଦ୍ୟାଳୟକୁ ଯିବା ସକାଶେ ବିବିଧ ଉପଦେଶ ଦ୍ୱାରା ଉତ୍ସାହିତ କରନ୍ତି ।

ସମିତିର ପୁଷ୍ଟି ସାଧନ ନିମିତ୍ତ ଜଗନ୍ନାଥପୁର, ବୀରନରସିଂହପୁର, ଶ୍ରୀରାମଚନ୍ଦ୍ରପୁର, ବୀରହରିକୃଷ୍ଣପୁର, ଶାସନ ଦାମୋଦରପୁର, ନିମାପଡ଼ା ଓ ଭୁବନେଶ୍ୱର ପ୍ରଭୃତି ଶାସନମାନଙ୍କରେ ଏହାର ଏକ ଏକ ଶାଖାସମିତି ସ୍ଥାପିତ ହୋଇଅଛି ।

ଗରିବ ଛାତ୍ରମାନଙ୍କ ବାସୋପଯୋଗୀ ଏକ ଛାତ୍ରାବାସ ଟ ୩୭୯୬/୯୫ ବ୍ୟୟରେ ନିର୍ମିତ ହୋଇଅଛି । ଏହାର ନିର୍ମାଣରେ ନିକଟବର୍ତ୍ତୀ ବ୍ରାହ୍ମଣଶାସନମାନଙ୍କରୁ ବିଶେଷ ସାହାଯ୍ୟ ମିଳିଥିବାରୁ ଏହି ସମିତି ୪ର୍ଥ ବର୍ଷରେ ନିଜ କାର୍ଯ୍ୟରେ ଯଥେଷ୍ଟ ଅଗ୍ରସର ହୋଇଅଛି ।

ଗତ ୪ବର୍ଷ ମଧ୍ୟରେ ସମିତିର ଆୟ ଟ ୧୦୬୩/୬୨ ଏବଂ ବ୍ୟୟ ଟ ୬୫୪।/୫ ଅବଶିଷ୍ଟ ୪୦୮/୧୨ ସମିତି ହସ୍ତରେ ଗଚ୍ଛିତ ଅଛି ।

ବ୍ୟୟର ହିସାବ —

| | |
|---|---|
| ଗତ ୪ବର୍ଷରେ ସାହାଯ୍ୟ ଦାନରେ | ଟ ୨୪୨/୨ |
| „ ଅବଶ୍ୟକୀୟଖରଚ | ଟ ୩୨।/୧୨ |
| ଛାତ୍ରାବାସ ନିର୍ମାଣରେ | ଟ ୩୭୯୬/୯୫ |

ଉତ୍କଳ ବ୍ରାହ୍ମଣ ସମିତିର କାର୍ଯ୍ୟନିର୍ବାହାର୍ଥ ନିମ୍ନଲିଖିତ ବ୍ୟକ୍ତିମାନେ କାର୍ଯ୍ୟ ନିର୍ବାହକା ସମିତିର ସଭ୍ୟ ରୂପେ ମନୋନୀତ ହୋଇଅଛନ୍ତି ।

ପୂଜ୍ୟପାଦ ପଣ୍ଡିତ ଶ୍ରୀ ସଦାଶିବ ମିଶ୍ର ଶର୍ମ୍ମା — ସଭାପତି

ଶ୍ରୀଯୁକ୍ତ ମିତ୍ରମିଶ୍ର ଶର୍ମ୍ମା — ସହକାରୀ ସଭାପତି

" କାଶୀନାଥ ମହାପାତ୍ର ଶର୍ମ୍ମା — ସମ୍ପାଦକ

" ପଣ୍ଡିତ ବାସୁଦେବ ରଥଶର୍ମ୍ମା କାବ୍ୟତୀର୍ଥ ସହକାରୀ ସମ୍ପାଦକ

" ରାମଚନ୍ଦ୍ର ଦାଶ ଶର୍ମ୍ମା — ତତ୍ତ୍ୱାବଧାରକ

ଶ୍ରୀଯୁକ୍ତ ପଣ୍ଡିତ ଯୋଗେନ୍ଦ୍ର ମିଶ୍ରଶର୍ମ୍ମା କାବ୍ୟବିଶାରଦ
" " ପରମାନନ୍ଦମିଶ୍ର ଶର୍ମ୍ମା
" ଚିନ୍ତାମଣି କର ଶର୍ମ୍ମା
" ଗୋପାଳ ହୋତା ଶର୍ମ୍ମା
" ଲୋକନାଥ ରଥ ଶର୍ମ୍ମା
" ପଣ୍ଡିତ ଜଗୃତ୍କୃଷ୍ଣମିଶ୍ରଶର୍ମ୍ମା କାବ୍ୟତୀର୍ଥ
" ଗୋପୀନାଥ ମିଶ୍ର ଶର୍ମ୍ମା
" ଜଗୃକୃଷ୍ଣ ମିଶ୍ର ଶର୍ମ୍ମା
" ବଳଭଦ୍ର ମିଶ୍ର ଶର୍ମ୍ମା
" ମୃତ୍ୟୁଞ୍ଜୟ ଦାଶ ଶର୍ମ୍ମା
} ସଭ୍ୟଗଣ



## ଉତ୍କଳ ବ୍ରାହ୍ମଣ ସମିତିର
## ନିୟମାବଳୀ ।

୧ । ଉତ୍କଳର ଦରିଦ୍ର ନିରାଶ୍ରୟ ବ୍ରାହ୍ମଣ ବାଳକମାନଙ୍କୁ ବିଦ୍ୟାର୍ଥୀଜୀବନରେ ସାହାଯ୍ୟ କରିବା ଓ ଦୁରବସ୍ଥ ବ୍ରାହ୍ମଣ ସମାଜର ଉନ୍ନତି ବିଧାନ କଳ୍ପେ ସଦୁପାୟ ସଙ୍ଗ୍ରହର ଚେଷ୍ଟା ରଖିବା ଏ ସମିତିର ମୁଖ୍ୟ କାର୍ଯ୍ୟ ହେବ ।

୨ । ଯେଉଁମାନେ ବାର୍ଷିକ ଭାବରେ ଏହି ସମିତିର ଉଦ୍ଦେଶ୍ୟ ସାଧନ ନିମନ୍ତେ ଚାନ୍ଦା ପ୍ରଦାନ କରିବେ ସେମାନେ ଏଥିରେ ସ୍ଥାୟୀ ସଭ୍ୟ ହୋଇପାରିବେ ।

୩ । ଯେଉଁମାନେ ସମିତିର ମଙ୍ଗଳ ଉଦ୍ଦେଶ୍ୟରେ ଏକ କାଳୀନ ଦାନ କରିବେ ସେମାନେ ଏହାର ଅସ୍ଥାୟୀ ସଭ୍ୟରୂପରେ ଗଣନୀୟ ହେବେ ।

୪ । ଏ ସଭାର ଅଧିବେଶନ ପାକ୍ଷିକ ହେବ । ଏବଂ ବର୍ଷକରେ ଥରେ ଏହାର ବାର୍ଷିକ ଅଧିବେଶନ ହେଉଥିବ ।

୫ । ଏ ସମିତିରେ ସ୍ଥାୟୀଭାବରେ ଜଣେ ସଭାପତି, ଜଣେ ସହକାରୀ ସଭାପତି, ଜଣେ ସମ୍ପାଦକ, ଜଣେ ସହକାରୀସମ୍ପାଦକ, ଓ ଜଣେ ତତ୍ତ୍ୱାବଧାରକ ନିଯୁକ୍ତ ହେବେ ।

୬ । ଏ ସମିତିର ଗୋଟିଏ କାର୍ଯ୍ୟନିର୍ବାହକ ସମିତି ରହିବ । ସେଥିରେ ସମିତିର କର୍ମଚାରୀମାନଙ୍କ ବ୍ୟତୀତ ୧୦ ଜଣ ସଭ୍ୟ ନିଯୁକ୍ତ ରହିବେ ।

୭ । ସମିତିର ପୁଷ୍ଟି ସାଧନ ନିମିତ୍ତ ପ୍ରଧାନ୨ ସ୍ଥାନ ମାନଙ୍କରେ ଏହାର ଶାଖା ସଭାମାନ ସ୍ଥାପିତ ହେବାର ଚେଷ୍ଟା କରାଯିବ ।

୮ । ପ୍ରତ୍ୟେକ ଶାଖା ସମିତି ତାହାର ଅନୁଷ୍ଠିତ କାର୍ଯ୍ୟର ବିବରଣ ଲିପିବଦ୍ଧ କରି ରଖୁଥିବେ; ଏବଂ ସମିତି ନାମରେ ଯେ ସବୁ ଅର୍ଥ-

ସଂଗ୍ରହ କରିବେ ତାହା ହିସାବ ସହିତ ଯଥା ସମୟରେ ଏହି ସମିତିର ସମ୍ପାଦକଙ୍କ ନିକଟକୁ ପଠାଉଥିବେ ।

୯ । ସମିତି ନାମରେ ଯେଉଁ ଟଙ୍କା କରିତ ସଂଗୃହୀତ ହେବ ତାହା ସମୁଦାୟ ସମ୍ପାଦକ ଗ୍ରହଣ କରି ସ୍ଥାୟୀ ସଭାପତିଙ୍କ ନାମରେ ସେଭିଂସ-ବ୍ୟାଙ୍କରେ ଗଚ୍ଛିତ ରଖିବେ । ଏବଂ ଆବଶ୍ୟକୀୟ ବ୍ୟୟ ବହନ ସକାଶେ ୫ ଟଙ୍କା ପର୍ଯ୍ୟନ୍ତ ନିଜ ହସ୍ତରେ ରଖିପାରିବେ । ଏ ସମସ୍ତ ଅର୍ଥ ବ୍ୟୟର ହିସାବ ଇତ୍ୟାଦି ସମ୍ପାଦକ ଓ ସହକାରୀ ସମ୍ପାଦକ ଯଥାମତ ରଖୁ-ଥିବେ । ଏବଂ ପ୍ରତିସପ୍ତାହରେ ଥରେ ତାହା ତତ୍ତ୍ୱାବଧାରକଙ୍କ ତତ୍ତ୍ୱାବ-ଧାନରେ ଆଣୁଥିବେ ।

୧୦ । ସମିତିର କୌଣସି ଗୁରୁତର ବିଷୟରେ ଅଧିବେଶନ ହେବାର ଆବଶ୍ୟକ ହେଲେ ଅନ୍ତତଃ ଜ ୧୦ ଣ ସଭ୍ୟ ସଭାସ୍ଥଳେ ଉପସ୍ଥିତ ରହିଥିବେ । ଆଉ ଯେବେ ଅଧିବେଶନ କାଳେ କୌଣସି କାର-ଣରୁ ସ୍ଥାୟୀ ସଭାପତି କିମ୍ବା ସହକାରୀ ସଭାପତି ଅନୁପସ୍ଥିତ ଥାନ୍ତି ତେବେ ଉପସ୍ଥିତ ସଭ୍ୟମାନେ ଆପଣା ମଧ୍ୟରୁ ଜଣକୁ ସଭାପତି କରି ସଭାର କାର୍ଯ୍ୟ ଚଳାଇ ନେବେ ।

୧୧ । କାର୍ଯ୍ୟନିର୍ବାହିକା ସମିତି ସଭାର ସମସ୍ତ ଭାର ( ସଭାର ଅର୍ଥ ସଂଗ୍ରହ କରିବା ଏବଂ ପ୍ରସ୍ତାବିତ ବିଷୟମାନଙ୍କୁ କାର୍ଯ୍ୟ ପରିଣତ କରିବା ଇତ୍ୟାଦି ) ଗ୍ରହଣ କରିବେ । ଅନ୍ୟୂନ ପାଞ୍ଚଜଣ ସଭ୍ୟ ଉପ-ସ୍ଥିତ ଥିଲେ କାର୍ଯ୍ୟ ନିର୍ବାହିକା ସମିତିର ଅଧିବେଶନ ହୋଇ ପାରିବ ।

୧୨ । ସଂସ୍କୃତ, ଇଂରେଜୀ ଓ ଓଡ଼ିଆ ଅଧ୍ୟୟନ କରୁଥିବା ବୁଦ୍ଧିମାନ୍ ଦରିଦ୍ର ବ୍ରାହ୍ମଣବାଳକମାନଙ୍କୁ ବିଦ୍ୟାଳୟର ବେତନ କିମ୍ବା ପାଠ୍ୟ-ପୁସ୍ତକ ଓ ସ୍ଥଳବିଶେଷରେ ଗ୍ରାସାଚ୍ଛାଦନ ପ୍ରଭୃତିରେ ସାହାଯ୍ୟ ଦିଆଯିବ ।

୧୩ । କୌଣସି ବିଦ୍ୟାର୍ଥୀ ଏ ସମିତିର ସାହାଯ୍ୟାକାଂକ୍ଷୀ ହେଲେ ତାହାର ଘର ଅବସ୍ଥା ବିଷୟରେ ସ୍ଥାନୀୟ କୌଣସି ଉଚ୍ଚପଦସ୍ଥ କିମ୍ବା

ଗଣ୍ୟ ମାନ୍ୟ ଭଦ୍ରଲୋକର ସାର୍ଟିଫିକେଟ୍ ସହିତ ଆବେଦନ ପତ୍ର, ସମିତିର ସମ୍ପାଦକଙ୍କ ନିକଟରେ ପ୍ରଦାନ କରିବ ।

୧୪ । ଏକ ସମୟରେ ଏକାଧିକ ସାହାଯ୍ୟାର୍ଥୀ ଭଦ୍ରଲୋକଙ୍କ ସାର୍ଟିଫିକେଟ୍‌ସହ ଉପସ୍ଥିତ ହେଲେ ସାର୍ଟିଫିକେଟ ବଳ ବିବେଚନାରେ ଏବଂ ଉପସ୍ଥିତ ଅଧିକାଂଶ ସଭ୍ୟଙ୍କ ମତ ଅନୁସାରେ ଉପଯୁକ୍ତ ବିଦ୍ୟାର୍ଥୀକୁ ସାହାଯ୍ୟ ଦିଆଯିବ ।

୧୫ । ସମିତିର ସାହାଯ୍ୟପ୍ରାପ୍ତ କୌଣସି ଶିକ୍ଷାର୍ଥୀ ବିନୟ, ସଚ୍ଚରିତ୍ରତା, ଋଜୁତା, ଓ ଶୀଲତା ପ୍ରଭୃତି ସଦ୍‌ଗୁଣମାନଙ୍କର ବିରୋଧାଚାରୀ ହେଲେ ତାହାର ସାହାଯ୍ୟ ଅଚିରେ ବନ୍ଦ କରାଯିବ ।

୧୬ । ସମିତିର ସାହାଯ୍ୟପ୍ରାପ୍ତ ବିଦ୍ୟାର୍ଥୀମାନେ ଅପଣାର ଅଧୀତ ବିଦ୍ୟାଳୟମାନଙ୍କରେ ବାର୍ଷିକ ପରୀକ୍ଷାରେ ବିଶେଷ କାରଣ ବ୍ୟତୀତ ଉଚ୍ଚଶ୍ରେଣୀମାନଙ୍କୁ ଉଠି ନ ପାରିଲେ ସେମାନଙ୍କର ସାହାଯ୍ୟ ବନ୍ଦ କରାଯିବ ।

୧୭ । ସଭାର ସଭ୍ୟମାନେ ସମିତିର ପାଣ୍ଠି ବୃଦ୍ଧି ବିଷୟରେ ସର୍ବଦା ସଚେଷ୍ଟ ହୋଇ ତାହା କାର୍ଯ୍ୟରେ ପରିଣତ କରିବେ ।

୧୮ । ସମିତିର କାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ ଯେଉଁମାନେ ଅର୍ଥ ସାହାଯ୍ୟ କରିବେ ସେମାନଙ୍କ ଦେୟ ଅର୍ଥ ଦାନସ୍ୱରୂପ ବିବେଚିତ ହେବ । କୌଣସି ସଭ୍ୟ ପଦ ତ୍ୟାଗ କଲେ ବା ସମିତିର କାର୍ଯ୍ୟ ଗ୍ରହଣ ନ କଲେ ସେ ତାଙ୍କର ଦେୟ ଅର୍ଥ ସମ୍ବନ୍ଧରେ କୌଣସି ଦାବୀ କରି ପାରିବେ ନାହିଁ ।

୧୯ । ଆବଶ୍ୟକ ହେଲେ ଏହି ନିୟମମାନ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇ ପାରିବ ।

---

ଗତ ଶୃରବର୍ଷ ମଧ୍ୟରେ ଯେଉଁ ସଦାଶୟ ବ୍ୟକ୍ତିମାନେ ଏହି ସମିତିର ଉଦ୍ଦେଶ୍ୟ ସାଧନ ନିମନ୍ତେ ବାର୍ଷିକ ଓ ଏକକାଳୀନ ଭାବରେ ଯେ ପରିମାଣରେ ଅର୍ଥ ସାହାଯ୍ୟ କରି ଅଛନ୍ତି ସେମାନଙ୍କ ନାମ ଓ ଦାନର ପରିମାଣ ନିମ୍ନରେ ପ୍ରଦତ୍ତ ହେଲା ।

| | | | |
|---|---|---|---|
| ୧ | ଶ୍ରୀଯୁକ୍ତ ଦସ୍ୟୁନାଥ ମିଶ୍ର | [ ବୀର ପୁରୁଷୋତ୍ତମ ପୁର ] | ଟ ୦୵ |
| ୨ | ,, ହରମୋହନ ସେନ ଗୁପ୍ତ | | ଟ ୦୵ |
| ୩ | ,, ଗୋପାଳଚରଣ ପଟ୍ଟନାୟକ | | ଟ ୦୵ |
| ୪ | ,, ମଧୁସୂଦନ ମିଶ୍ର | (ଭୁବନେଶ୍ୱର) | ଟ ୦। |
| ୫ | ,, ରାମଚନ୍ଦ୍ର ମହାପାତ୍ର | [ବୀର ବଳଭଦ୍ର ପୁର] | ଟ ୦। |
| ୬ | ,, ପଣ୍ଡିତ ମହାଦେବ ବ୍ରହ୍ମା | | ଟ ୦। |
| ୭ | ,, ରାଧାନାଥ ନନ୍ଦ | | ଟ ୦। |
| ୮ | ,, ରଘୁନାଥ ମିଶ୍ର | ( ଭୂଃ ପଃ ) | ଟ ୦। |
| ୯ | ,, ହଳଧର ମହାପାତ୍ର | ,, | ଟ ୦। |
| ୧୦ | ,, କୁଳମଣି ମହାପାତ୍ର | ,, | ଟ ୦। |
| ୧୧ | ,, ଗୋପାଳ ତ୍ରିପାଠୀ | ,, | ଟ ୦। |
| ୧୨ | ,, ମଧୁସୂଦନ ମହାପାତ୍ର | ,, | ଟ ୦। |
| ୧୩ | ,, ବୈଦ୍ୟନାଥ ମହାପାତ୍ର | ,, | ଟ ୦। |
| ୧୪ | ,, ଦସ୍ୟୁନାଥ ନନ୍ଦ | [ବାମନାଳ] | ଟ ୦। |
| ୧୫ | ,, ଗଣେଶ୍ୱର ମହାପାତ୍ର | | ଟ ୦। |
| ୧୬ | ,, ବାବୁ କ୍ଷେତ୍ରମୋହନ ମହାପାତ୍ର | | ଟ ୦। |
| ୧୭ | ,, ,, ନିତ୍ୟାନନ୍ଦ କାନୁନଗୋ | ( ରେଃ ଏ ) | ଟ ୦। |
| ୧୮ | ,, ,, କୃପାସିନ୍ଧୁ ସୁନ୍ଦର | | ଟ ୦। |
| ୧୯ | ,, ଗୋପୀନାଥ ମିଶ୍ର | [ଶ୍ରୀରାମଚନ୍ଦ୍ର ପୁର] | ଟ ୦।୵ |
| ୨୦ | ,, ଗୋପୀନାଥ ଦୀକ୍ଷିତ | [କାକଟ ପୁର] | ଟ ୦।୵ |
| ୨୧ | ,, ନୀଳକଣ୍ଠ ରଥ (ହରହରକୃଷ୍ଣ ପୁର) | | ଟ ୦।୵ |

୨୨ ଶ୍ରୀଯୁକ୍ତ ପଣ୍ଡିତ ବାସୁଦେବ ମିଶ୍ର (ବୀରହରକୃଷ୍ଣପୁର) ଟ ୦ ୪
୨୩ " " ଶ୍ୟାମସୁନ୍ଦର ରଥ କାବ୍ୟତୀର୍ଥ ଟ ୦ ୪
୨୪ " " ପରମାନନ୍ଦମିଶ୍ର(ଶାସନଦାମୋଦରପୁର) ଟ ୦ ୪
୨୫ " " ରତ୍ନାକର ଗର୍ଗବଡୁ (ଭୁବନେଶ୍ୱର) ଟ ୧ ୪
୨୬ " ବଳଭଦ୍ର ପାଣିଗ୍ରାହୀ [ବାଲେଶ୍ୱର] ଟ ୦ ୪
୨୭ " ପଣ୍ଡିତ ନାରାୟଣ ମିଶ୍ର (ବଣନାଥପୁର) ଟ ୦ ୪
୨୮ " " ବନମାଳୀ ମହାପାତ୍ର ଟ ୦ ୪
୨୯ " ଗଣେଶ୍ୱର ଉପାଧ୍ୟାୟ ଟ ୧ ୪୦
୩୦ " ନାରାୟଣ ପଣ୍ଡା (ଭଣ୍ଡାରପୁର) ଟ ୦ ୪
୩୧ " ଗୋପୀନାଥ ପଣ୍ଡା ଟ ୦ ୪
୩୨ " ନରସିଂହ ମିଶ୍ର (ଶ୍ରୀପୁରୁଷୋତ୍ତମପୁର) ଟ ୦ ୪
୩୩ " ବାଇଧର ମିଶ୍ର " ଟ ୦ ୪
୩୪ " ବାବୁ କୁଞ୍ଜମୋହନ ଘୋଷ ଟ ୦ ୪
୩୫ " " ଦୈତ୍ୟାରି ନାୟକ (ଇଃ ପଃ) ଟ ୦ ୪
୩୬ " " ମାଗୁଣିଦାସ ଟ ୦ ୪
୩୭ " " କେଶବ ଦାସ ଟ ୦ ୪
୩୮ " " ସୋମନାଥ ସାମନ୍ତସିଂହାର ଟ ୦ ୪
୩୯ " " ଭଗବାନ ଗୋପୀନାଥ ପଟ୍ଟନାୟକ ଟ ୦ ୪
୪୦ " " ଦଇତାରି ଦାସ ଟ ୦ ୪
୪୧ " ପଣ୍ଡିତ ମୃତ୍ୟୁଞ୍ଜୟ ରଥ ( କଟକ ). ଟ ୦ ୬
୪୨ " ଦାମୋଦର ମହାପାତ୍ର (ବଣନାଥପୁର) ଟ ୦ ୪
୪୩ " ବାବୁ ଭଗାରଦାସ ( ରେଃ ଏ ) ଟ ୦ ୪
୪୪ " ପଣ୍ଡିତ ମଧୁସୂଦନ ମିଶ୍ର ( ଶ୍ରୀରାମଚନ୍ଦ୍ର ପୁର ) ଟ ୦ ୪
୪୫ " ମାନଗୋବିନ୍ଦ ମିଶ୍ର ( ଶାସନ ଦାମୋଦରପୁର ) ଟ ୦ ୪
୪୬ " ବାବୁ ଗଣେଶ୍ୱର କାନୁନଗୋ ମୋକ୍ତାର ଟ ୦ ୪

୪୭ ବଣନାଥପୁର ଶାଖାସମିତି ଟ ୦ ୷
୪୮ ଶ୍ରୀଯୁକ୍ତ ବାବୁ ଭାଗୀରଥି ପଟ୍ଟନାୟକ ମୋକ୍ତାର ଟ ୦ ୷୬
୪୯ ଶ୍ରୀଯୁକ୍ତ ପଣ୍ଡିତ ଗଦାଧର ତ୍ରିପାଠୀ ଟ ୧ ୲
୫୦ ,, ,, ଗଙ୍ଗାଧର ମହାପାତ୍ର [ବଣନାଥପୁର] ଟ ୧ ୲
୫୧ ,, ଗୋପୀନାଥ ତ୍ରିପାଠୀ (ଲେଖନପୁର) ଟ ୧ ୲
୫୨ ,, ପୀତାମ୍ବର ଦାଶ (ଶ୍ରୀରାମଚନ୍ଦ୍ର ପୁର) ଟ ୧ ୲
୫୩ ,, ପଣ୍ଡିତ ଚନ୍ଦ୍ରାମଣି ରଥ (ପୁନ୍ଦରପଦା) ଟ ୧ ୲
୫୪ ,, ,, ଯଜ୍ଞେଶ୍ୱର ମିଶ୍ର କାବ୍ୟତୀର୍ଥ ଟ ୧ ୲
୫୫ ,, ଅଗାଧୁ ମହାପାତ୍ର (ବୈଦ୍ୟନାଥପୁର) ଟ ୧ ୲
୫୬ ,, ରାମଚନ୍ଦ୍ର ମିଶ୍ର ( ଶରନରସିଂହପୁର) ଟ ୧ ୲
୫୭ ,, ପଣ୍ଡିତ ଆର୍ତ୍ତତ୍ରାଣ ଦାଶ (ଶ୍ରୀରାମଚନ୍ଦ୍ର ପୁର) ଟ ୧ ୲
୫୮ ,, ଚତୁର୍ଭୁଜ ଭୁବନେଶ୍ୱର ଦାଶ [ବନପୁର] ଟ ୧ ୲
୫୯ ,, ଗୋବିନ୍ଦ ମିଶ୍ର [ବୀରପ୍ରତାପପୁର] ଟ ୧ ୲
୬୦ ,, ଗୋପୀନାଥ ମିଶ୍ର ଟ ୧ ୲
୬୧ ,, ପୂଜା—ଲୋକନାଥ ପଣ୍ଡା ଟ ୧ ୲
୬୨ ,, ପଣ୍ଡିତ ଗଙ୍ଗାଧର ମହାପାତ୍ର କାବ୍ୟତୀର୍ଥ ଟ ୧ ୲
୬୩ ,, ବଳଭଦ୍ର ଖୁଣ୍ଟିଆ ( ବାସେଲୀ ସାହି ଟ ୧ ୲
୬୪ ,, ପଣ୍ଡିତ ହରିହର ମିଶ୍ର (ଶାସନ ଦାମୋଦରପୁର) ଟ ୧ ୲
୬୫ ,, ଗଣେଶ୍ୱର ମିଶ୍ର (ସମଶରପୁର) ଟ ୧ ୲
୬୬ ପଣ୍ଡା ଗୋପୀନାଥ ମହାପାତ୍ର ଟ ୧ ୲
୬୭ ,, ବଳଭଦ୍ର ଖୁଣ୍ଟିଆ [ ଖୁଣ୍ଟିଆସାହି ] ଟ ୧ ୲
୬୮ ,, ପଣ୍ଡିତ କୃଷ୍ଣବିହାରୀ ଭଟ୍ଟାଚାର୍ଯ୍ୟ ଟ ୧ ୲
୬୯ ,, ବାବୁ ହରିଶ୍ଚନ୍ଦ୍ର ରାଓ ଟ ୧ ୲
୭୦ ,, ,, ବିଦ୍ୟାଧର ଦାସ ଟ ୧ ୲
୭୧ ,, ,, ଜଗଦ୍ବନ୍ଧୁ ପଟ୍ଟନାୟକ ଟ ୧ ୲

୭୨ ଶ୍ରୀଯୁକ୍ତ ବାବୁ ଅନ୍ତର୍ଯ୍ୟାମୀ ପଟ୍ଟନାୟକ — ଟ ୧ ୲
୭୩ „ „ ବାସୁଦେବ ଦାସ — ଟ ୧ ୲
୭୪ „ „ ଶରଚ୍ଚନ୍ଦ୍ର ଘୋଷ — ଟ ୧ ୲
୭୫ „ „ ରାଧାମୋହନ ରାୟ — ଟ ୧ ୲
୭୬ „ „ ବୈଷ୍ଣବଚରଣ ମହାନ୍ତି — ଟ ୧ ୲
୭୭ „ „ ଲକ୍ଷ୍ମଣ ପଟ୍ଟନାୟକ — ଟ ୧ ୲
୭୮ „ „ ସନ୍ତୋଷ ମହାନ୍ତି — ଟ ୧।/
୭୯ „ „ ରଘୁନାଥ ରାଉ — ଟ ୧୳
୮୦ „ ଦାମୋଦର ରଥ (ବେରବୋଇ) — ଟ ୧୳
୮୧ „ ପଣ୍ଡିତ ବୈଦ୍ୟନାଥ ମିଶ୍ର (ବଡ଼ଁଡଣା) — ଟ ୧୳
୮୨ „ ମାଗୁଣିମିଶ୍ର (ବିଶ୍ୱନାଥପୁର) — ଟ ୧୳
୮୩ „ ଲୋକନାଥ ବ୍ରହ୍ମା — ଟ ୧୳
୮୪ „ ପଣ୍ଡିତ ରାମକୃଷ୍ଣ ମହାପାତ୍ର (ବିଶ୍ୱନାଥପୁର) — ଟ ୧୳
୮୫ „ ଜୟକୃଷ୍ଣ ମିଶ୍ର — ଟ ୧୳
୮୬ „ ଅର୍ତ୍ତତ୍ରାଣ ତ୍ରିପାଠୀ (ନମାପଡ଼ା) — ଟ ୧୳
୮୭ ଶ୍ରୀମାନ୍ ରାଜାସାହେବ ( ଦାନ୍ତିଆ ) — ଟ ୨୳/
୮୮ ଶ୍ରୀଯୁକ୍ତ ହରହର ମହାପାତ୍ର — ଟ ୧୳୶
୮୯ „ ନାରାୟଣ ମିଶ୍ର ( ବୀରପ୍ରତାପ ପୁର) — ଟ ୧୳୶/୪
୯୦ „ କୃଷ୍ଣଚନ୍ଦ୍ର ମିଶ୍ର — ଟ ୧୴
୯୧ „ ପଣ୍ଡିତ ଲୋକନାଥ ପଟ୍ଟଯୋଶୀ — ଟ ୨୲
୯୨ „ ଗୋପୀନାଥ ମିଶ୍ର — ଟ ୨୲
୯୩ „ ଆନନ୍ଦଚନ୍ଦ୍ର ପତି ବ; ଏ — ଟ ୨୲
୯୪ „ ଲୋକନାଥ ରଥ [କୋଠସାହି] — ଟ ୨୲
୯୫ „ ଦାମୋଦର ପଣ୍ଡା (ତହସିଲଦାର ସଦାନନ୍ଦପୁର) — ଟ ୨୲
୯୬ „ ମହନ୍ତ ଚତୁର୍ଭୁଜ ଦାସ — ଟ ୨୲

———

୯୭ ଶ୍ରୀଯୁକ୍ତ ଗୌରଦତ୍ତ ଗୋସ୍ୱାମୀ ଟ ୨୲

୯୮ ,, ବାବୁ ଜଗଦ୍ବନ୍ଧୁ ସିଂହ ଟ ୨୲

୯୯ ,, ,, ଅଭୟପ୍ରସାଦ ଦାସ ଟ ୨୲

୧୦୦ ,, ମହନ୍ତ ମହାରାଜ (ଗଙ୍ଗାମାତା ମଠ) ଟ ୨୲

୧୦୧ ,, ବାବୁ ଶ୍ରୀପ୍ରସାଦ ସର୍ବାଧିକାରୀ ଟ ୨୲

୧୦୨ ,, ,, ଦୁର୍ଗାଚରଣ ମିଶ୍ର ଟ ୨୲

୧୦୩ ,, ,, ବାସୁଦେବ ଆଢ୍ୟ ଟ ୨୲

୧୦୪ ,, ହରକୃଷ୍ଣ ଖୁଣ୍ଟିଆ ଟ ୨୲

୧୦୫ ,, ପଣ୍ଡିତ ରଘୁନାଥ ମିଶ୍ର (ବୀର ନରସିଂହପୁର) ଟ ୨୲

୧୦୬ ,, ଦାଶରଥି ମହାପାତ୍ର (ଗୌଡ଼ବାଡ଼ସାହି) ଟ ୨୲

୧୦୭ ,, ଜଗନ୍ନାଥ ପଣ୍ଡା (ଭଙ୍ଗାରପୁର) ଟ ୨୲

୧୦୮ ,, ନରସିଂହ ମିଶ୍ର (ବୀର ନରସିଂହପୁର) ଟ ୨୲

୧୦୯ ,, ପଣ୍ଡା ଜଗନ୍ନାଥ ମହାପାତ୍ର ଟ ୨୲

୧୧୦ ,, ପଦ୍ମନାଭ ପ୍ରଭୁହାରୀ ଟ ୨୲

୧୧୧ ,, ଦୀନବନ୍ଧୁ ଖୁଣ୍ଟିଆ ଜମିଦାର ଟ ୨୲

୧୧୨ ,, ଗଣେଶ ମହାସୁଆର ଟ ୨୲

୧୧୩ ,, ଜଗନ୍ନାଥ ମିଶ୍ର [ଶାସନ ଦାମୋଦର ପୁର] ଟ ୨୲

୧୧୪ ମାର୍କଣ୍ଡେୟ ରଥ [ ବୀରନରସିଂହ ପୁର ] ଟ ୨୲

୧୧୫ ,, ଚତୁର୍ଧୁରୀ ଶିବରାମ ଦାଶ ( ବଳପୁର ) ଟ ୨୲

୧୧୬ ,, ପଣ୍ଡିତ ଜୟକୃଷ୍ଣ ମିଶ୍ର କାବ୍ୟତୀର୍ଥ ଟ ୨।/

୧୧୭ ,, ହରିବନ୍ଧୁ ଦାଶ ଟ ୨୳

୧୧୮ ,, ପଣ୍ଡିତ ଲୋକନାଥ ମହାପାତ୍ର କାବ୍ୟତୀର୍ଥ ଟ ୨୳

୧୧୯ ,, ବାଉରିବନ୍ଧୁ ମିଶ୍ର ଟ ୨୴

୧୨୦ ,, ସ୍ୱପ୍ନେଶ୍ୱର ପାଣିଗ୍ରାହୀ ମୋକ୍ତାର ଟ ୨୴

୧୨୧ ,, ସାମନ୍ତ ପଣ୍ଡିତ ବୈଦ୍ୟନାଥ ମହାପାତ୍ର ତର୍କଭୂଷଣ ଟ ୩୲

| | | | |
|---|---|---|---|
| ୧୨୨ | ସ୍ୱର୍ଗୀୟ | ରଘୁନାଥ ଶତପଥୀ [ ଜୟପୁର ] | ଟ ୩୲ |
| ୧୨୩ | ଶ୍ରୀଯୁକ୍ତ | ପୂର୍ଣ୍ଣ ନାରାୟଣ ପଣ୍ଡା | ଟ ୩୲ |
| ୧୨୪ | ,, | ଗୋପୀନାଥ ମିଶ୍ର ( ଶ୍ରୀପୁରୁଷୋତ୍ତମପୁର ) | ଟ ୩୲ |
| ୧୨୫ | ,, | ନାରାୟଣ ଦାଶ [ ସୁଅଣ୍ଡୋ ] | ଟ ୩୲ |
| ୧୨୬ | ,, | ଗଦାଧର ନନ୍ଦ [ ଅଳପିଙ୍ଗଲ ] | ଟ ୩୲ |
| ୧୨୭ | ,, | ବଳଭଦ୍ର ମିଶ୍ର | ଟ ୩୲ |
| ୧୨୮ | ,, | ପଣ୍ଡିତ ବୈଦ୍ୟନାଥ ମିଶ୍ର | ଟ ୩୲ |
| ୧୨୯ | ,, | ଅନ୍ତର୍ଯାମି ଶତପଥୀ [ କଟକ ] | ଟ ୩୲ |
| ୧୩୦ | ,, | ଡାକ୍ତର ଗୋପାଳ ଦାଶ (ଶ୍ରୀରାମଚନ୍ଦ୍ର ପୁର) | ଟ ୩୲ |
| ୧୩୧ | ,, | ଭୂପତିନାଥ ମିଶ୍ର | ଟ ୩୲ |
| ୧୩୨ | ,, | ସତ୍ୟବାଦୀ ଦାସ | ଟ ୩୲ |
| ୧୩୩ | ,, | ପଣ୍ଡିତ ଗୋପୀନାଥ ମହାପାତ୍ର କାବ୍ୟତୀର୍ଥ | ଟ ୩୷ |
| ୧୩୪ | ,, | ସିଦ୍ଧେଶ୍ୱର ମିଶ୍ର [ ହର ପ୍ରତାପପୁର ] | ଟ ୩। |
| ୧୩୫ | ,, | ମୃତ୍ୟୁଞ୍ଜୟ ଦାଶ | ଟ ୩୷ |
| ୧୩୬ | ,, | ହରିନାଥ ମିଶ୍ର (ଯମଶରପୁର) | ଟ ୩୵ |
| ୧୩୭ | ,, | ଭଗବାନ ସେନାପତି | ଟ ୩୷ |
| ୧୩୮ | ,, | ବାବୁ ଚନ୍ଦ୍ରମୋହନ ମହାନ୍ତି ବି, ଏ | ଟ ୪୲ |
| ୧୩୯ | ,, | ଗଣେଶ ସାମନ୍ତରାୟ ( ବାଲିଯାତ୍ରି ) | ଟ ୪୲ |
| ୧୪୦ | ,, | ନରସିଂହ ପ୍ରତିହାରୀ | ଟ ୪୲ |
| ୧୪୧ | ,, | ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର | ଟ ୪୲ |
| ୧୪୨ | ,, | ହରିହର ପତି [ ଓଙ୍କାରପୁର ] | ଟ ୪୲ |
| ୧୪୩ | | ରାଜ୍ୟ ଚନ୍ଦ୍ରଧରପୁର ଶାସନ ମହାଜନମାନେ | ଟ ୪୲ |
| ୧୪୪ | ଶ୍ରୀଯୁକ୍ତ | ଗୋପୀନାଥ ମହାସୁଆର | ଟ ୪।୷ |
| ୧୪୫ | ,, | ବାବୁ ବଂଶୀଭୂଷଣ ବନ୍ଦ୍ୟୋପାଧ୍ୟାୟ | ଟ ୪୳ |
| ୧୪୬ | ,, | ଜୟକୃଷ୍ଣ ମହାନ୍ତି | ଟ ୪୵ |
| ୧୪୭ | ,, | ଗୋପାଳ ହୋତା | ଟ ୪୵୷ ୪୳ |

| | | |
|---|---|---|
| ୧୪୮ | ,, ପଣ୍ଡିତ ଯୋଗେନ୍ଦ୍ର ମିଶ୍ର କାବ୍ୟବିଶାରଦ | ଟ ୪।୷୵ |
| ୧୪୯ | ,, ,, ସଦାଶିବ ମିଶ୍ର ( ରୂପଦେଇପୁର ) | ଟ ୪।୷ |
| ୧୫୦ | ,, ,, ହରିହର ରଥ | ଟ ୫୲ |
| ୧୫୧ | ,, ବଟକୃଷ୍ଣ ମହାପାତ୍ର ( ହରିଚଣ୍ଡୀ ସାହି ) | ଟ ୫୲ |
| ୧୫୨ | ହରେକୃଷ୍ଣପୁର ଶାସନ ମହାଜନମାନେ | ଟ ୫୲୯ |
| ୧୫୩ | ଶ୍ରୀଯୁକ୍ତ ଅଧିକାରୀ ରାମକୃଷ୍ଣ ଗୋସ୍ୱାମୀ | ଟ ୫ [illegible] |
| ୧୫୪ | ଶ୍ରୀମତ୍ ଦୟାଳୁରଞ୍ଜନ ମୁଖୋପାଧ୍ୟାୟ | ଟ ୫୲ |
| ୧୫୫ | ବୀର ବଳଭଦ୍ରପୁର ଶାସନ ମହାଜନମାନେ | ଟ ୫୲ |
| ୧୫୬ | ଶ୍ରୀଯୁକ୍ତ ଦାମୋଦର ଦାସ [ ଦଇତା ] | ଟ ୫୲ |
| ୧୫୭ | ସ୍ୱର୍ଗୀୟ ରାଜା ବ୍ରଜେନ୍ଦ୍ରମାନସିଂହ ଭ୍ରମରବରରାୟ (ତମପଡ଼ା) | ଟ ୫୲ |
| ୧୫୮ | ଶ୍ରୀମତୀ ରାଜମାତା [ ନରସିଂହପୁର ] | ଟ ୫୲ |
| ୧୫୯ | ଶ୍ରୀଯୁକ୍ତ ଶଶୀକାନ୍ତ ସେନ | ଟ ୫୲ |
| ୧୬୦ | ,, ଜଗନ୍ନାଥ ମିଶ୍ର ( ନମାପଡ଼ା ) | ଟ ୫। |
| ୧୬୧ | ,, ପଣ୍ଡିତ ମାର୍ଗୁଣିବ୍ରହ୍ମା କବିରାଜ | ଟ ୫ୱ |
| ୧୬୨ | ,, କାଶୀନାଥ ମିଶ୍ର | ଟ ୫ୱ୵ |
| ୧୬୩ | ,, ଦାମୋଦର ରଥ | ଟ ୬୲ |
| ୧୬୪ | " ପଣ୍ଡିତ ନୀଳକଣ୍ଠ ମିଶ୍ର [ଶ୍ରୀରାମଚନ୍ଦ୍ର ପୁର] | ଟ ୬୲ |
| ୧୬୫ | " ପଣ୍ଡିତ ବାସୁଦେବ ରଥ କାବ୍ୟତୀର୍ଥ | ଟ ୬୵୯ |
| ୧୬୬ | ,, ବାବୁ ଗୌରୀଚରଣ ମହାନ୍ତି | ଟ ୬। |
| ୧୬୭ | ,, ରାମଚନ୍ଦ୍ର ମିଶ୍ର | ଟ ୬ୱ |
| ୧୬୮ | ,, ଲୋକନାଥ ରଥ [ ବୀର ହରେକୃଷ୍ଣପୁର ] | ଟ ୭। |
| ୧୬୯ | ,, ଦୟାନିଧି ରାଜଗୁରୁ ମହାପାତ୍ର | ଟ ୭ୱ |
| ୧୭୦ | ,, ରାମଚନ୍ଦ୍ର ତ୍ରିପାଠୀ [ ଉତ୍ତରଶାସନ ] | ଟ ୭।୷୵ |
| ୧୭୧ | ,, ବନମାଳୀ ପଣ୍ଡା [ ବଲଙ୍ଗା ] | ଟ ୮ [illegible] |
| ୧୭୨ | ,, ବାବୁ ଗୋପବନ୍ଧୁ ଦାସ ବି, ଏ | ଟ ୮।୵ |

୧୭୩ ଶ୍ରୀଯୁକ୍ତ ଚିନ୍ତାମଣି କର ଟ ୯୵୬
୧୭୪ ,, ପଣ୍ଡିତ କାଶୀନାଥ ମହାପାତ୍ର ଟ ୯୷୧୦୯
୧୭୫ ,, ବାସୁଦେବ ମିଶ୍ର [ ସମ୍ବଲପୁର ] ଟ ୧୦୦
୧୭୬ ,, ଗୋପୀନାଥ ପଟ୍ଟନାୟକ [ଜୟପୁର ରାଜପାତ୍ର] ଟ ୧୦୦
୧୭୭ ଜମିଦାର ଶ୍ୟାମସୁନ୍ଦର ନରେନ୍ଦ୍ର [କେନ୍ଦ୍ରାପଡ଼ା] ଟ ୧୦୦
୧୭୮ ,, କପିଳେଶ୍ୱର ମିଶ୍ର ଟ ୧୧୦
୧୭୯ ,, ପଣ୍ଡିତ ପରମାନନ୍ଦ ମିଶ୍ର ଟ ୧୧୵୯୯
୧୮୦ ,, ବାସୁଦେବ ମହାପାତ୍ର ଟ ୧୧୪
୧୮୧ ଗରଳରସିଂହପୁର ଶାସନ ମହାଜନମାନେ ଟ ୧୨୦
୧୮୨ ,, ମଧୁସୂଦନ ପଣ୍ଡା ଟ ୧୨୵୬
୧୮୩ ,, ରଘୁନାଥ ମିଶ୍ର ଟ ୧୩।
୧୮୪ ଶ୍ରୀମାନ୍ ରାଜା ମହୋଦୟ [ ନରସିଂହପୁର ] ଟ ୧୫୦
୧୮୫ ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓ ଟ ୧୫୦
୧୮୬ ,, ,, ମଧୁସୂଦନ ଦାଶ ବି;ଏ ଟ ୧୭୦
୧୮୭ ସ୍ଥାନୀୟ ପଣ୍ଡିତ ମଣ୍ଡଳୀ ଟ ୧୯।୵
୧୮୮ ଶ୍ରୀଯୁକ୍ତ ବାବୁ ବ୍ରଜସୁନ୍ଦର ଦାସ ବି;ଏ ଟ ୨୦୦
୧୮୯ ,, ,, ମାଧବଚନ୍ଦ୍ର ମିଶ୍ର ବି;ଏ ଟ ୨୧।
୧୯୦ ,, ବୃନ୍ଦ ଲୋକନାଥ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ଟ ୨୩୦
୧୯୧ ,, ମିନ୍ଦୁ ମିଶ୍ର ଟ ୨୭୦
୧୯୨ ,, ପଣ୍ଡିତ ବାସୁଦେବ ଷଡ଼ଙ୍ଗୀ [ବୀର ବାଲଭଦ୍ରପୁର] ଟ ୩୫୦
୧୯୩ ,, ,, ସଦାଶିବ ମିଶ୍ର (କାବ୍ୟକଣ୍ଠ) ଟ ୪୩୭୵୬
୧୯୪ ଶ୍ରୀରାମଚନ୍ଦ୍ରପୁର, ବାଣନାଥପୁର, ଓ ଶାସନ ଦାମୋ-
ଦରପୁର ମହାଜନମାନେ [ଗୃହୋଦକ ଜଣ । ଘ । ।] ଟ ୫୦୦
୧୯୫ ଶ୍ରୀ[illegible]ମଠନାରାୟଣ ଦାସ ଲାହୁରୀ (ଗୁଜରାଟ) ଟ ୫୦୦
୧୯୬ ,, ରାମଚନ୍ଦ୍ର ଦାସ ଟ ୫୭୧୧

| | | |
|---|---|---|
| ୧୯୭ | ମୁଣ୍ଡିଭଙ୍ଗାଦ୍ୱାରା ସଗୃହୀତ | ୬୮୩୲୬ |
| ୧୯୮ | ଗଚ୍ଛିତ ଟଙ୍କାରୁ ଆୟ | ୬୯୧ ୩୵ |

ଦାତାମାନଙ୍କ ନିକଟରେ ପ୍ରାର୍ଥନା ଏହି ଯେ ମୋହର ଶକ୍ତି ଅନୁସାରେ ଯଥାସାଧ୍ୟ ଠିକ୍ ହିସାବ ପ୍ରଦାନ କରୁଅଛି । ଦେବାହିଁ ଯଦି ପ୍ରକାଶିତ ଭ୍ରମ ଲକ୍ଷିତ ହୁଏ କିମ୍ବା କୌଣସି ଦାତାଙ୍କର ନାମପ୍ରକାଶ ହୋଇନାହିଁ ଏବଂ ଜଣାଇଲେ ଆଦର ସହିତ ଗ୍ରହଣ କରି ଭ୍ରମସଂଶୋଧନ କରିବି ।—

# ପରିଶିଷ୍ଟ ।

ବ୍ରାହ୍ମଣ ସମିତିର ସ୍ଥାୟୀ ସଭାପତି ପୂଜ୍ୟପାଦ ମହାମାନ୍ୟ ଚରିତ ଶ୍ରୀଯୁକ୍ତ ପଣ୍ଡିତ ସଦାଶିବ ମିଶ୍ରଶର୍ମ୍ମା ମହାଶୟ ଅସୀମ ପରିଶ୍ରମ ସହକାରେ, ନିଜର ସ୍ୱାର୍ଥ, ସ୍ୱାସ୍ଥ୍ୟ ଏବଂ ସମୟ ତ୍ୟାଗ କରି ସମିତିର କାର୍ଯ୍ୟ ସୁଚାରୁରୂପେ ନିର୍ବାହ କରି ଥିବାରୁ ସଭା ତାହାଙ୍କୁ କୃତଜ୍ଞତା ସହିତ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି ।

ବ୍ରାହ୍ମଣ ସମିତିର ଛାତ୍ରାବାସ ନିର୍ମ୍ମାଣ କାର୍ଯ୍ୟରେ କାୟମନୋବାକ୍ୟରେ ଅସୀମ ପରିଶ୍ରମ, ଅତ୍ୟନ୍ତ ଉତ୍ସାହ ଏବଂ ଶ୍ରଦ୍ଧା ସହିତ କାର୍ଯ୍ୟ କରି ଥିବାରୁ ସଭା ଶ୍ରୀମାନ୍ ଦାମୋଦର ମହାପାତ୍ର ଓ ବଳଭଦ୍ର ମିଶ୍ରଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛି ।

ସମିତିର ପୁଷ୍ଟିସାଧନ ଉଦ୍ଦେଶ୍ୟରେ ଶ୍ରୀମାନ୍ ଗୋପାଳ ହୋତା ମହାଶୟ ମୁଷ୍ଟିଭିକ୍ଷା ପ୍ରଭୃତି କେତେକ ସଦୁପାୟ ଉଦ୍ଭାବନ ଏବଂ ତାହା କାର୍ଯ୍ୟରେ ପରିଣତ କରିଥିବାରୁ ସଭା ହୃଦୟର ଗଭୀରତମ ପ୍ରଦେଶରୁ ତାଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛି ।

ସଦ୍‌ବଂଶୋଦ୍ଭବ ଓ ବ୍ରାହ୍ମଣହୃଦୟସମ୍ପନ୍ନ ଶ୍ରୀଯୁକ୍ତ ବାବୁ ଦିବାକର ଦାସ ଓ ବାବୁ ରଘୁନାଥ ରାଓ ସଦାଶୟ ବ୍ୟକ୍ତିଦ୍ୱୟ ସଭାର କାର୍ଯ୍ୟ କଳାପ ଗ୍ରହଣ, ସମର୍ଥନ ଏବଂ ନାନାଦି ଗୁରୁତର ବିଷୟମାନଙ୍କରେ ସଭାକୁ ସାହାଯ୍ୟ କରିଥିବାରୁ ଏ ସମିତି ଅତ୍ୟନ୍ତ ପ୍ରୀତିସହକାରେ ସେମାନଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛି ।

ପୁରୀ ଜିଲ୍ଲାର ଏକମାତ୍ର ସୁଯୋଗ୍ୟ ଜମିଦାର ସରଳ ଚରିତ୍ର ପ୍ରଜାବତ୍ସଳ ସଦାଳାପୀ ସତ୍‌କାର୍ଯ୍ୟ ନିରତ ଘୋଡ଼ଙ୍ଗର ଜମିଦାର ଶ୍ରୀ ଶ୍ରୀ ଶ୍ରୀ ବଳଭଦ୍ର [illegible] ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ [illegible] ଗୁଣଗ୍ରାହକ ଥିବାରୁ ଏ ସମିତି ତାହାଙ୍କୁ ଆନ୍ତରିକ [illegible] ଅଶେଷ ଧନ୍ୟବାଦ ପ୍ରଦାନ କରୁଅଛି ।

ଯେଉଁ ୨ ବ୍ରାହ୍ମଣେତର ଜାତୀୟ ସଦାଶୟ ସହୃଦୟ, ବ୍ୟକ୍ତିମାନେ ଏହି ସମିତିକୁ ଅର୍ଥ ପ୍ରଦାନ କରି ସମିତିର କାର୍ଯ୍ୟକଳାପରେ ସହାୟ ହୋଇଅଛନ୍ତି, ସଭା ସେମାନଙ୍କ ନିକଟରେ କୃତଜ୍ଞ ରହି ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛୁ ।

ଇତି

---